ଏଠାରେ ଯାତ୍ରୀ ସେହି ମନୁଷ୍ୟ ଆତ୍ମା ଯିଏ ଦେହ ତ୍ୟାଗ କଲା ପରେ ନୂତନ ଶରୀରରେ ଜନ୍ମ ଗ୍ରହଣ ଆଶାରେ ନୂତନ ଜନ୍ମସ୍ଥାନ ଖୋଜିବା ଆଶାରେ ଇତସ୍ତତଃ ଧାବମାନ । ସେହି ବିବ୍ରତାତ୍ମାକୁ ଏ ଲେଖାର ଏଗାରଟି ଅଧ୍ୟାୟରେ ଏଗାର ବିଭିନ୍ନ ବିଷୟକ ତୀକ୍ଷ୍ଣ ପ୍ରଶ୍ନଗୁଚ୍ଛ ନିକ୍ଷେପ ପୂର୍ବକ ଜର୍ଜରିତ କରା ଯାଇଛି ଏହି କବିତାରେ ।

- ଲଲାଟେନ୍ଦୁ କବି

## ଯାତ୍ରୀ - ୧

ଯାତ୍ରୀ ତୁମେ ରାତ୍ରୀଟାରେ ଘଞ୍ଚ ଏଇ ଅନ୍ଧକାରେ
ଏକେଲା ଏକେଲା କୁଆଡ଼େ ଚାଲିଚ କୁହ |
ପାନ୍ଥଶାଳା ନାହିଁ ତ ପାଖେ
ହାଲିଆ ହେଲେ ଶୋଇବ ଟିକେ
ଧୋଇବ ହାତ ମୁହଁ |

ସାଥୀରେ କିଆଁ ଆଣିଲ ନାହିଁ
ସଙ୍ଗାତ ମିତ ଭଉଣୀ ଭାଇ
ନିଜର ଦେଖି କାହାକୁ ହେଲେ ଜଣେ |
ଦୀର୍ଘ ପଥ ଚାଲିବ ଏକା
କଅଁଳ ପାଦ ଲାଗିବ ଥକା
କେଉଁଠି ଖାଲ କେଉଁଠି ଢିପ,
କଣ୍ଟା ଝଟା ବିଛାକୁ ସାପ;
ହେଉ ଛୋଟିଆ ଗନ୍ଧହୀନ,
ହେଉ ବା ସଢ଼ା ଝଡ଼ା ମଳିନ,
ଗୋଟେ -- ଫୁଲ ତ ନାହିଁ କେଣେ |

ସାରା ଦିନର କ୍ଲାନ୍ତି ପରେ
ବିଶ୍ରାମ କି ନେଇଛ ଥରେ,
ଏ ହରବରେ
ଆରମ୍ଭିଲ ଯାତ୍ରା କିଆଁ କୁହ |

ଅଭାବ କିବା ଥିଲା ତୁମର
ସବୁ ତ ଥିଲା କେଡ଼େ ସୁନ୍ଦର,
କିଏ ବା କିଛି କହିଲା କଥା,
ଦେଲା କି ତୁମ ମନରେ ବ୍ୟଥା ?
ଝରିଲା ଆଖି ଲୁହ?
ସତେ – ମନଟା ପୋଡ଼ି ପାଉଁଶ ହେଲେ
କେମିତି ସହିବ ଦେହ ?
ଏଡ଼ିକି ବେଗେ ପକାଅ ପାଦ
ଅନ୍ଧାର ରାତି ଭାରି ବିପଦ;
ଆଗେ ତୁମର ସାଥୀ ସୋଦର
କିଏ ସେ ଅଛି କୁହ |
କୁଆଡ଼େ ଚାଲିଚ କୁହ |

ଲଲାଟେନ୍ଦୁ କବି

## ଯାତ୍ରୀ -୨

ଯାତ୍ରୀ ତୁମେ ରଙ୍ଗ ଭୂମେ କରିଥିଲ କି ଆଗକୁ ଦେଖି
ରାତ୍ରୀ-ଅଭିସାର ?
ଧରି କି ନେଲ ଯାତ୍ରା-ପଥେ ବିନା ଅସ୍ତେ ସୂର୍ଯ୍ୟ ସତେ
ଉଇଁବ ବାରମ୍ବାର |

ଯେତିକି ଦିନ ସେତିକି ରାତି
ଲାଭ ସହିତ ସମାନ କ୍ଷତି
        ରଖି -- ଆସିଲ ପସରା |
ଯେତିକି ଖୁସି ସେତିକି ଲୁହ
ହାସ୍ୟ-ରୋଳ ସାଥୀରେ କୋହ
ଦଣ୍ଡି ଧରି ସମାନ କରି
ବାଣ୍ଟିଲା କେ ହିସାବ କରି
        ତୁମ -- ପଣ୍ୟ ଚିଜ ସାରା |

ରାତିଟା ଏବେ ଆସୁଛି ମାଡ଼ି
ଶଗଡ଼ ହାତୀ ଘୋଡ଼ା କି ଗାଡ଼ି
ମିଳିବ ନାହିଁ ଏ ପଥେ କାହିଁ
        ଅନ୍ଧକାରେ—
ଚାଲିବ ଏକା ଏକା |

ଉଆଁସ ରାତି, ଚାନ୍ଦ ନାହିଁ,
ଦିଶେ ନା ତାରା ମେଘୁଆ ହେଇ,
ଦିଗ -- ଜାଣିବ କେମିତି ଭାଇ,
କିଏ -- ରାସ୍ତା ଦେବ କହି
        ପାଶେ -- କିଏ ସେ  ଅଛି ସଖା |

ଲଲାଟେନ୍ଦୁ କବି

## ଯାତ୍ରୀ – ୩

ପଥିକ ! କିଛି ପଡୁଛି ଏବେ ମନେ ?
ବାଲ୍ୟକାଳ -- ମାଟି କଣ୍ଢେଇ ଖେଳ;
ସେଥିରୁ ପୁଣି ନିଇତି ହଟ୍ଟଗୋଳ,
ଝଗଡ଼ା ଝାଟି ମାଆର ପିଟି,
ବନ୍ଦ ନାହିଁ ଦିନେ --
ପଡୁ ଥିବ ତ ମନେ ?
ହାଲିଆ କେବେ ହେଇ ନାହଁ ତ
ହେଲେ ବି ଯେତେ ହାତକୁ ହାତ;
କାହାକୁ କେବେ କହିବି ନାହିଁ
ଦେଉଛି କଥା ମୁହିଁ,
ଆସ୍ତେ ମୋତେ ବତେଇ ଦେବ କାନେ ?

ମନେ ତ ଥିବ -- ମାଟିର ବସାଘର,
ଆଜିଟା ସଫା -- କାଲିକି ଅସୁନ୍ଦର,
ତାକୁ -- ଆସିଲ ଦୂରେ ଛାଡ଼ି
ହେଉନି ମନ -- ଥରେ ସେ ଘର
ଯାଇ ଦେଖିବ ଫେରି ?
ଅଭିମାନରେ ଛାଡ଼ି ଯେ ଦେଲ ଘର,
ଅଜଣା ପଥେ ସଜବାଜରେ ଆସିଲ ଏତେ ଦୂର,
ଏବେ ଫେରିଲେ -- ମାଡ଼ିବ ଲାଜ ଭୟ;

ଆଲୁଅ ଥାଉଁ ଫେରିଲ ନାହିଁ,
ଭଙ୍ଗା ଘରେ ରହେ କି କେହି ?

ଯେଉଁ ଘରଟି ଗଲା ଭୁଷୁଡ଼ି
ତାକୁ କି କେବେ ହେବ ସଜାଡ଼ି ?
ନୂଆ ଘରର ସନ୍ଧାନରେ ଚାଲିଛ ? ସତ କୁହ |

ଦେଖିବ ଯେବେ ନୂଆ ବସତି
ଧରି ଗାଣ୍ଡୁଆ କୋଡ଼ି ଗଇଁତି
ନୂଆ ଘରଟେ ଦେବ କି ଗଢ଼ି
ପକାଇ ଟାଣ ନିଅଁ ?
ତୁମ -- ମନର କଥା କାନରେ କହି ଦିଅ|

ଲଲାଟେନ୍ଦୁ କବି

## ଯାତ୍ରୀ-୪

ଯାତ୍ରୀ ତୁମେ ବିକ୍ରୀ ସାରି
ଗାଣ୍ଠିଳିଟିକୁ ପିଠିରେ ଧରି
ହିସାବ ଖାତା ପାଥେୟ ଭରି
ଚାଳି ପଥର ନିରନ୍ତର
ଚାଲିଛ ଏକା ଏକା |

ସାଥୀରେ କିଛି ନାହିଁ ତ ଧନ,
ଯୋଗ-ବିୟୋଗ ହର-ଗୁଣନ
କଡ଼ା ଗଣ୍ଡା କ୍ରାନ୍ତି ପୁଣି
ତା' ସାଥୀରେ -- ଅଧୁଲା ପାହୁଲା

ତୁମ –
ଖାତାରେ ଅଛି ଭରା,
ଏତିକି ଭାରି ଓଜନ ଧରି
ଚାଲିଛ କେତେ ଦୂରା ।

ସଞ୍ଜ ଯାଇ ଘଞ୍ଚ ଏବେ
        ରାତ୍ରୀ ଆସେ ନଇଁ,
ଗଳ୍ପ ଟିକେ କରିବା ପାଇଁ
ପାଖରେ କେହି ନାହିଁରେ ନାହିଁ,
ଏକେଲାଟାରେ ଲାଗୁଥିବ ତ ଭୀଷଣ ଥକା ଥକା ।
ଅମଡ଼ା ପଥେ ଅନ୍ଧ ରାତେ କେମିତି ଚାଲିଛ ଏକା ?
ପାହିଲେ ରାତି କଷିବ ବସି
ଖାତାରେ ଯେତେ --
        ଅଙ୍କ ଅଛି ଲେଖା ।
ଏଠି ଯେ ସାରା -- ରାସ୍ତା ଅଙ୍କା ବଙ୍କା,
ତୁମେ କେମିତି ଚାଲିଛ ଏକା ?

ଲଲାଟେନ୍ଦୁ କବି

## ଯାତ୍ରୀ – ୫

ଯାତ୍ରାରମ୍ଭ କରିବା ବେଳେ
ଗଣ୍ଠିଳିଟିଏ କି କଉଶଳେ
ଦେଇଛି କିଏ ବାନ୍ଧି;
ପଛରେ ବଡ଼ ଗଣ୍ଠିଟିଏ
ସେଠିକି କାହା ହାତ କି ପାଏ
ତୁମେ -- ଗଣ୍ଠିଳି ହାତେ ବନ୍ଦୀ |
ଏଡିକି ତା'ର ବୁଦ୍ଧି --
ଯୁଗ ଯୁଗରୁ ବୁଦ୍ଧି ବଳେ
ବାଆବତାସେ ସଳିଳେ ସ୍ଥଳେ
ସଭିଙ୍କ ଗଳେ ତା' ଡୋର ଛନ୍ଦା ଛନ୍ଦି |

ସନ୍ଧ୍ୟା ବେଳୁ ଛଡ଼ାଏ ଧନ,
ଅନ୍ଧାରେ ବାନ୍ଧି ଦିଏ ବହନ,
କର୍ମାଶୟକୁ –
ପେଡ଼ି-ପେଟରା କରି;

ପେଡ଼ିରେ କାହିଁ ଧନ ତ ନାହିଁ,
ଖାଲି -- ଖାତାବହିରେ ଭାରୀ;
ତାକୁ -- ରାସ୍ତା ଯାକ ନିଅନ୍ତି ଲୋକେ
ପିଠିରେ ଧରି ଧରି |

ରାତ୍ରୀ ଗଲେ ପାହି,
ଆଶ୍ରୟଟେ ଲୋଡିବ ଯେବେ ଭାଇ,
ଆଦରେ ଡାକି ନେବ ତୁମକୁ କିଏ ନବୀନା ବଧୂ;
ଅନ୍ଧାରୀ ଘରେ ଆରାମ ପାଇଁ
ନିଜ ଜଠରେ ଦେବ ଶୁଆଇ
ଉଦରୁ ତାର ରୁଧିର ଦେଇ
ଅଧର ଧାରେ ଦେବ ଝରାଇ
ମୃଦୁଳ ହାସ-ମଧୁ;
ଢାଳିବ ଘିଅ, ଜାଳି ସଳିତା
ପୂଜିବ କେତେ ଦିଅଁ ଦେବତା,
କହିବ -- ଆଜି ଶୁଣିଲେ କଥା
ପରାଣ ବ୍ୟଥା
ପରମପିତା ଦୀନଦୁହିତାବନ୍ଧୁ |

ଲଲାଟେନ୍ଦୁ କବି

## ଯାତ୍ରୀ-୬

ଅନ୍ଧ ତୁମେ ଶବ୍ଦ ବାରି
ବନ୍ଧୁରିତ ପଥେ,
ସ୍ପନ୍ଦନର
ମନ୍ଦ ମନ୍ଦ ଛନ୍ଦେ ବନ୍ଧା କ୍ଷୁଦ୍ର ପଦ ପାତେ,
ଉର୍ବୀ ଗନ୍ଧ ବାରି,
ଅଦ୍ରି ତୁଠ ସରିତ ତଟ ସିନ୍ଧୁ ସ୍ଫୋଟ
ଅତିକ୍ରାନ୍ତ କରି;

ବିନ୍ଦୁ ବିନ୍ଦୁ ଘର୍ମ ବାରି
ଚର୍ମ ଛିଦ୍ରୁ ଶୋଣିତ ପ୍ରାୟ
ଦେଇଛ କେତେ ହାରି |

ଆରମ୍ଭରୁ ରୌଦ୍ର ଦାହେ ଦଗ୍ଧ କଲ ଦେହ;
ବୃଦ୍ଧ କାଳେ ନଷ୍ଟ-ବଳେ
ଜୀବନ-ରବି-ଅସ୍ତ ବେଳେ
କହି ଉଠିଲ ମହା ବିକଳେ -- ଦୁଃସହ ଦୁଃସହ |

ଯେବେ ପ୍ରତ୍ନ ହେଲା ବାସ,
ଚାଲି ଆସିଲ ଯାତ୍ରା ପଥେ
ପାଆନ୍ତେ ଅବକାଶ |

ଦୀର୍ଘ ପଥ ପଛରେ ଏବେ,
ଆଗକୁ ଆଉ ଅଳ୍ପ ଅଛି ବାକି,
ପାନ୍ଥଶାଳା ପାଖରେ ଅଛି;
ଉଦ୍ରଥଟି ଉଠିବ ଯେବେ ଡାକି

ତା'ର ଦୁଆର ଯିବ ଖୋଲି,
ଶୁପ୍ତ ଜନ ଉଠିବେ ଜାଗି   ନିଦ୍ରାଳସ ଭାଜି
ଆରମ୍ଭିବେ ଯାତ୍ରା ନୂଆ, ନୂତନ ବାସ ଖୋଜି |
ଅଳସ ଦୁଇ ଶ୍ରାନ୍ତ ଆଖି ମେଲି |

ଲଲାଟେନ୍ଦୁ କବି

## ଯାତ୍ରୀ-୭

ଆଗକୁ ଅଛି ଜନବସତି ଅଳ୍ପ ବାଟ ପରେ,
ନୂତନ ବାସ ଗଢ଼ିବା ପାଇଁ ପହଞ୍ଚି ଗଲେ ଥରେ,
କୋମଳମତି ନବ ଯୋଷିତା
ରହିଛି ବସି ପଥକୁ ତୁମ ଦେଖି,
କୋଳକୁ ନେବ ଟେକି,
କରିବ କେତେ ଗେଲ;
ବରଷେ ଗଲେ ଛାଡ଼ିବ ତଳେ
ଖେଳିବ ତୁମେ ପୁଣି ଥରେ
ପୁରୁଣା ତୁମ ଖେଳ !!!

ପୁରୁଣା ସେଇ  ବିଭ୍ରମରେ  ପଡ଼ ନା ଆଉ ଏତେ,
ଆଦିମ ବାସ କର ସ୍ମରଣ
ସେଥିରେ ଟିକେ ଲଗାଅ ଧ୍ୟାନ
ଶଇଶବରୁ କେବେ ହେଁ ଏଠି
ବାନ୍ଧ ନା ବନ୍ଧନ,
ନିଜ –-- ଘରଠି ରଖି ମନ,
କରି -- ଚାଲି ଥା' କଲ୍ୟାଣ,
ନିରନ୍ତର ଅବଧୂତେ ||

ଏବେ –
ମାଟିର ଘର ଭଙ୍ଗା ଗଢ଼ା ଛାଡ଼;
ରାତ୍ରୀଦୀପେ ଜାଳି ସଳିତା
ଅଭ୍ୟାସିଲେ ସତ୍ୟ-ଗାଥା

ସ୍ମରଣ କଲେ ନିଜ ରାଇଜ
ପଡିବ ସବୁ ମନେ;
ଅଳ୍ପ ହେଉ , ନିତି ହେଜ
ଆପଣା ଦେଶ-ଗ୍ରାମେ |

ଫେରି ଯା' ସାଥୀ,
ସେ ଦେଶ ପ୍ରୀତି
ପାଇବୁ ପୁଣି ଫେରି;
ପୁଣ୍ୟ ପାପ ମୋହ ମାୟାରୁ
ମମତ୍ଵର ବନ୍ଧନରୁ
ରହି ଯା ଅପସରି;
ଏଇ ଦେଶର ଗାଁ ମାଟିକୁ
ଶ୍ରଦ୍ଧା ନୀରେ ସିକ୍ତ କର
ପଢ଼ିଶା ଜ୍ଞାନ କରି |
ନିଜ –
ମାତୃଭୂମେ ଆହ୍ବାନ ଆବୋରି ||

ଲଲାଟେନ୍ଦୁ କବି

## ଯାତ୍ରୀ-୮

ଅନ୍ଧକାର ଅଛି ଆହୁରୀ
ଥକିଲେ ପଥ ଯିବ କି ସରି
ହାଲୁକା ହେବ ଚାଲିବା ବେଳ
ମୋ'  କଥାକୁ ଶୁଣ:

ସାହସୀ ତୁମେ ଯୋଦ୍ଧା ଥିଲ,
କରିଛ କେତେ ରଣ ?

ଯାତ୍ରୀ ତୁମେ ଯୁଦ୍ଧ ଭୂମେ
ରଖିଛ ମନେ
ଦେଇଛ ଟାଳି ଖଡ୍ଗ ତୋଳି
ବଇରୀ ମାଳ ମାଳ ?
ପିଣ୍ଡରୁ ତୁମ ଯାଇଛି ବୋହି
ରକ୍ତ କେତେ ଉଷ୍ମ ହେଇ,
ତୁଣ୍ଡରେ କରି ଶୌର୍ଯ୍ୟଧ୍ୱନି
ଥରାଇ ପାଦ ତଳ ମେଦିନୀ,
ମୁଣ୍ଡରୁ କେତେ ଝାଳ ?

ଶତ୍ରୁ ହାଣି ଯୁଦ୍ଧ ଜିଣି ପାଇଲ ଶେଷେ କିଛି ?
ପଦକ ଥିଲା କୁଆଡ଼େ ଗଲା
ସାଥୀରେ ତାକୁ
ଆଣିଲ ନାହିଁ କିଆଁ
ଦି'ଦିନ ପରେ କିଏ ବା ଥରେ
ଦେଖିବ ତାକୁ ତା'ପର ଦିନ
ଲଗାଇ ଦେବ ନିଆଁ |

ତୁମଠୁ ଆଗେ କେତେ ପଥିକ
ଋଣ୍ଡାଇ ଥିଲେ ଯେତେ ପଦକ
ଚିହ୍ନ ବର୍ଣ୍ଣ ଦିଶୁନି ତାର
କୁଆଡ଼େ ସବୁ ଅଛି ?

ଶତ୍ରୁ ସବୁ କରି ଦମନ
ପାଇଲ କେତେ ମାନ ସମ୍ମାନ;
ବନ୍ଧୁ ସାଜି ଲୁଚି ରହିଲେ ଯିଏ,
ଭଣ୍ଡ ସେଇ
ଛ'ଅଟି ସାଥୀ
କୁହ କେମିତି
ଅଣ୍ଟିରେ ଧରି ରଖିଛ ଆଜି ଯାଏ ?

କେମିତି ସିଏ ସାଥୀ ?
ସେହି ମାନଙ୍କୁ ପାଖରେ ଧରି
ସେଇଠି ମନ ଭିଡ଼ି ଓଟାରି
ଗଲାଣି ତୁମ କାଳ କାଳକ
ବନ୍ଧନରେ ବିତି |

ରାସ୍ତା ଏବେ ଅଛି ଆହୁରୀ
ବୁଝି ବିଚାରି
ଚାଲି ଥା ପଦ ପାତି |

ଲଲାଟେନ୍ଦୁ କବି

## ଯାତ୍ରୀ – ୯

କୁହ ପଥିକ କର୍ମ ଭୂମେ ସାଧନା କଲ  କେତେ ?
ଯମ ନିୟମ ପରେ ଆସନ
ପ୍ରାଣାୟାମଠୁ ପ୍ରତ୍ୟାହାର,

ଧାରଣା ଧ୍ୟାନ ଶେଷ କରି
ସମାଧିସ୍ଥ
ହେଲ କି ସତେ ?
କୁହ ତ ଦେଖି
ଦୁର୍ଗମ ଏ ପଥେ
କାହିଁକି ତେବେ
ଲକ୍ଷ୍ୟହୀନ କକ୍ଷହୀନ
ସାଜିଲ କ୍ଷପାଚର ?

ଶୌଚ କରି ଦେହକୁ ଖାଲି
ମନକୁ ଦେଲ ଛାଡ଼ି ?
ସନ୍ତୋଷ ବା ମିଳିବ କାହୁଁ
ମନଟା ହେଲେ
କାନ୍ଦି କଚାଡ଼ି ?

ହେବ କି କିଛି ତପ ?
ସ୍ୱାଧ୍ୟାୟ ବି ହେଇ ପାରେ କି
ମନଟା ସଦା ଧାଇଁଲେ ଧପ ଧପ ?

ବିଜନେ କେବେ ବସିଥିଲ କି
ଈଶ୍ୱରପ୍ରଣିଧାନେ ?
ମୁକ୍ତିପଥ ଘାରିଲା ବେଶି
କି ଅବା ବେଳ କାଟିଲ ବସି
ସଂସାରର କ୍ଷୁଦ୍ର କ୍ଷୁଦ୍ର ବିତ୍ତ ଆହରଣେ ?

ସୁନାରୂପାର ଥିଲା କି ହାର,
ଦେଇ ଥାଆନ୍ତ କି ଉପହାର
ଝିଅକୁ ଶାଶୁଘରେ;
ପୁତ୍ରବଧୂକୁ ଲୁଚି?
ପୁତ୍ର ଲାଗି ଥିଲ କି ମାଗି
ରାଜ-ପଦବି କର୍ମଦାତାଠାରେ ?
ସେଠୁ ପାଇଲ କେବେ କିଛି ?
ଉତ୍କୋଚ କି ଦେଲ କା ହାତେ
ନିଜ –
ବିବେକ ମୂରୁଛି ?

ଭାଳୁ ଥିଲ କି ବଂଶ କଥା ନିରତ ଅହରହ ?
ଭାଳି ଭାଳି କି ଜୀର୍ଣ୍ଣ କଲ ଦେହ ?
ଏବେ –
ଲାଗୁଛି କି ଏ ଦୀର୍ଘ ପଥ ଦୁଃସହ ଦୁଃସହ ?

ଲଲାଟେନ୍ଦୁ କବି

## ଯାତ୍ରୀ-୧୦

ହେ ପଥଚାରୀ କଲମ ଧରି
ବସି ଥିଲ କି କବିତା ଲେଖି
ସାଜିବ କବି,
ଯଶ ଉପାଧି ରାଜ ପଦବି ଆଶେ ?
ନିଜ ଭିତରୁ ଲେଖିଲ କେତେ
ପରଠୁ କେତେ ଛାଙ୍କିଲ ଗ୍ରନ୍ଥେ ?
ଚାନ୍ଦା ନେଇ ଛାପିଲ କେତେ ବହି ?
ଭାଷାକୁ କେତେ କଲ ଇଜ୍ଜତ
କେତେ ବା କଲ କଳଙ୍କିତ
ଭାବର ଦ୍ୱାହି ଦେଇ ?

ଭାବନା ଯେବେ ଆସେ କା ମନେ
ଆସେ କି ତାହା ଭାଷା ବିହୁନେ ?
ଭାଷା କି କେବେ ପଥ ଉଗାଳେ ଭାବର ପ୍ରକାଶନେ ?

ଶୁଦ୍ଧ ଶୁଭ ଭାଷା ନ ଥାଇ କି ଦେଲ ପରିଚୟ ?
ଅନ୍ତର୍ଜାଲେ ଭାବିଲ ଚଳେ ମାତୃଭୂମି ମାତୃଭାଷା
ଆଳରେ ବ୍ୟବସାୟ ?

ପାଠ ବେପାରୀ ! ପାଞ୍ଜି ଧରି
ବସିଛି ଏଇ ଆଗରେ ତୁମ ସେଠ;
ବେପାର ଯାହା ଦେଇଛ କରି ଗୋଟି ଗୋଟିକା ହିସାବ ନେଇ
ଛାଡ଼ିବ ଯାଇ ବାଟ ||

ସମ୍ବାଦପତ୍ରେ, ଫେସବୁକରେ ସାଜି ଥିଲ କି କବି ?
ଲାଇକ୍ ପାଇଁ କମେଣ୍ଟ ପାଇଁ ଚାଟ୍-ବାକ୍ସେ ବନ୍ଧୁ ପାଶେ
ହେଲ କି ଛଟପଟ ?

ପାଇଲ ସେଠୁ ସାବାସି ଯେତେ, ଯେତେକ ନାମ ଖ୍ୟାତି:
କିଛି ତ ସାଥେ ଆଣିଲ ନାହିଁ ଖାଲି ହାତରେ ଘୋର ଅନ୍ଧାରେ
ଆଜି – ଏକେଲା କେମିତି ?
ତୁମ – ସ୍ତାବକ କାହିଁ ଗଲେ ?
ସିଏ କି ସତେ ନିଜର ପଥେ ତୁମକୁ ଗୋଟେ କଣ୍ଟା ମଣୁଥିଲେ
??
ଖ୍ୟାତି ବଡ଼ିମା ପଛରେ ଏବେ ପଡ଼ ନା ଆଉ ଏତେ;
ନୂତନ କରି କାଲି ଟା ଗଢ଼ ନୂଆ କିରଣ ପାତେ ||

ଲଲାଟେନ୍ଦୁ କବି    ୨୨/୦୮/୧

## ଯାତ୍ରୀ-୧୧

ଶୁଣ ପଥିକ !          ରାସ୍ତା ଯାକ
    କଣ୍ଟା ଝଟା ଭରା,
ନର୍ଦ୍ଦମାରେ          ଦନ୍ତୁରିତ
    ବନ୍ଧୁରିତ ଧରା    ||    1

ବିହାନ ଥକା ବିପଦ ଏକା
ଚାଲିଛି ବଢି ବଢି;
ରାସ୍ତା ସରି ଗଲାରେ ବୋଲି
ଖୁସିରେ ମନ ଉଡି || 2

ଢୁଳେଇ ଗଲେ ରାତି ପାହିଲେ
ଦେଖିବ ଚଉପାଶ,
ରାସ୍ତା ଧାରେ କିଏ କାହିଁ ରେ,
ପଡିଆ ଆଉ ଘାସ || 3

ବଣରୁ ବୁଦା ବାଲିର ଗଦା
ପଙ୍କ ଡିପ ଖାଲ,
ବସିବା ପାଇଁ ଚାଳଟେ ନାହିଁ
ଶୁଖିବ ବୋଲି ଝାଳ || 4

ପଥକୁ ଚାହିଁ ଚାଲି ଥା ଭାଇ
ଥକ୍କା ଥକା ପାଦ;
କଲେ ତୁ ଡେରି ଆସିବ ଘେରି
ଦୁଃଖ ପରମାଦ || 5

ସମୟ ଡିଳେ ହାତେ ନ ଥିଲେ
ପାରିବ ନାହିଁ ଖୋଜି,
ଭଦ୍ରତର ନ ପାଇ ଘର
ବୁଦ୍ଧି ଯିବ ହଜି || 6

ତୁମରି ପରି        ବୁଜୁଳା ଧରି
    ସଂଖ୍ୟାହୀନ ଲୋକ;
ଧରି ଯେ ଯାହା        ନିଜର ରାହା
    ଅନ୍ଧିକା ପଥିକ ||    7

ବୈଭାବର !        ତାମସ ଘୋର
    ଥରଟେ; ଗଲେ ହଟି;
ସଭିଏଁ ସେଠି        ହେବେ ଅତିଥି
    ପଥିକ ଗୋଟି ଗୋଟି ||    8

ଆସିବେ ଧାଇଁ        କେ କାହୁଁ ଡେଇଁ
    ବନ୍ଧ ବିଲ ହିଡ;
କି ତରବର !        ଅଳ୍ପ ଘର,
    ଲଗେଇ ଦେବେ ଭିଡ ||    9

ଅଳ୍ପ ଜାଗା        ଯେ ହତଭାଗା
    ପାଇବ ନାହିଁ ଥାନ,
କାହା ଦୁଆରେ        ପ୍ରତୀକ୍ଷାରେ
    କାଟିବ ଗୋଟା ଦିନ ||    10

ଲଲାଟେନ୍ଦୁ କବି        ୨୦୧୭୦୯୦୪-୧୧୪୩

# **ସମାପ୍ତ**